ସାଧାରଣତଃ ଉତ୍ସବ ଅନୁଷ୍ଠାନ ଶୋଭଯାତ୍ରା ବେଳେ ବ୍ୟାଣ୍ଡ ବାଜା ବାଜିଥାଏ । ଗୁଡ଼ିଏ ଲୋକ ନାନା ବାଜା ଧରିଥାଆନ୍ତି । ଡ୍ରମ ବାଜେ । ସବୁ ବାଜା ମଧ୍ୟରେ ମୁଖ୍ୟ ହେଉଛି ପେଁକାଳି । ଏହାକୁ ଫୁଙ୍କାଯାଏ । ଠବଣ ଗୁଡ଼ିବା ନେବା କାଇଦା ଉପରେ ଏହି ବାଜାର ସ୍ୱର ନିର୍ଭରକରେ । ପେଁକାଳି ଅଗ୍ରଟି ପାଟି ଭିତରେ ରହେ ।

ପାଶ୍ଚାତ୍ୟ ଦେଶମାନଙ୍କରେ ସାଧାରଣ ବିଶ୍ୱାସ ଯେ, ଏହି ବାଜା ବଜେଇ ବାଦକଦଳ ଯାଉଥିବା ବେଳେ ଯଦି କେହି ଲେମ୍ବୁଟିଏ ଖାଉଥାଏ କିମ୍ବା ହାତରେ ଧରି ପାଟିରେ ଚୁଚୁମୁଥାଏ; ତାହାହେଲେ ତାକୁ ଦେଖିବା ମାତ୍ରେ ବାଜା ବନ୍ଦ କରିଦିଆଯାଏ । ତୁମେ କୁହ ବା ନ କୁହ ବାଜାବାଲା ଲେମ୍ବୁ ଚୁଚୁମିବା ଦେଖିବା ମାତ୍ରେ ସାଙ୍ଗେ ସାଙ୍ଗେ ପେଁକାଳି ଫୁଙ୍କିବା ବନ୍ଦ କରିଦେବ । ଏହାର କାରଣ ହେଉଛି ଲେମ୍ବୁକୁ ଦେଖିବା ମାତ୍ରେ ବାଜାବାଲାର ପାଟି ଲାଳେଇଯିବ । ଲାଳ ବାହାରିବାରେ ପେଁକାଳିର ମୁହଁ ବନ୍ଦ ହୋଇଯିବ, ଆଉ ବାଜିବ ନାହିଁ । ତାହା ହେବା ପୂର୍ବରୁ ବାଜା-ବାଲା ଆଗରୁ ବନ୍ଦ କରିଦିଏ ।

ଏହା କୌଣସି ଅନ୍ଧବିଶ୍ୱାସ ନୁହେଁ, ଏହା ସ୍ୱାଭାବିକ କଥା । ଏକଥା ସତ ଯେ କୌଣସି ଖଟା ପଦାର୍ଥ ଅନ୍ୟ ଜଣେ ଖାଉଥିବା ବା

ଖାଇବା ଦେଖିଲେ ଦେଖିବା ବାନ୍ଧର ପାଟି ନିର୍ଣ୍ଣିତ ଭାବରେ ଲାଳେଇଆସିବ । କାହା କାହା ଜିଭ ଏଭଳି ଲାଳେଇଯାଏ ଯେ, ଥପ ଥପ ହୋଇ ପାଟିରୁ ଲାଳ ଝରିଆସେ, ଏହା ହୁଏ ବୋଲି ଜାଣିକରି ସୁଦ୍ଧା ଜିଭକୁ ସଂଯତ କରି ପାରୁନା ।

ଏହି ଲାଳକୁ ଜାଣିଶୁଣି ସଂଯତ କରି ହେବନାହିଁ, ଏହି ତଥ୍ୟ ଓ ସତ୍ୟକୁ ଭିତ୍ତିକରି ରୁଷର ବିଖ୍ୟାତ ବୈଜ୍ଞାନିକ ଇଭାନ ପାଭ୍ଲୋଭ ବହୁବର୍ଷ ଧରି ଗବେଷଣା ଚଳାଇଥିଲେ । ଏହି ଗବେଷଣା ଲାଗିରହିଲା ୧୯୦୫ରୁ ୧୯୧୭ ପର୍ଯ୍ୟନ୍ତ ଦୀର୍ଘ ଏଗାର ବର୍ଷ ଧରି ।

ଅନେକେ କହିଲେ, ଇଏ ତ ଏକ ସାଧାରଣ କଥା । ଖାଦ୍ୟ ଦେଖିଲେ ପାଟିରୁ ଲାଳ ଝରିବା ଶରୀରର ଏକ ସ୍ୱାଭାବିକ ଧର୍ମ । ଏହା ଉପରେ ଗବେଷଣା ନିରର୍ଥକ । କିନ୍ତୁ ଇଭାନ ପାଭ୍ଲୋଭ କୌଣସି ଆଲୋଚନା ସମାଲୋଚନା ପ୍ରତି ଭ୍ରୂକ୍ଷେପ ନକରି ଗବେଷଣା ଚଳାଇଲେ । ମନୁଷ୍ୟର ଜୀର୍ଣ୍ଣପ୍ରକ୍ରିୟା ନେଇ ସେ ପରୀକ୍ଷା ନିରୀକ୍ଷା କଲେ । ତଦ୍ୱାରା ସେ ପୃଥିବୀରେ ଜଣେ ପ୍ରବୀଣ ବିଚକ୍ଷଣ ବୈଜ୍ଞାନିକ ଭାବରେ ଇତିହାସରେ ବିଶିଷ୍ଟ ସ୍ଥାନ ଅଧିକାର କରିଆସିଛନ୍ତି । ଅବଶ୍ୟ ପରେ ସେ ଯେଉଁ ଗବେଷଣା କଲେ, ତାହାର ଫଳ ଯାହା ମିଳିଲା, ସେଥିରେ ତାଙ୍କର ପୂର୍ବ କୃତିତ୍ୱ ଘୋଡ଼ାଇହୋଇପଡ଼ିଲା, ତଥାପି ତାଙ୍କର ପ୍ରାରମ୍ଭିକ ଗବେଷଣା ହିଁ ଶରୀରତତ୍ତ୍ୱ ଉପରେ ଗବେଷଣାଲାଗି ଅନ୍ୟାନ୍ୟମାନଙ୍କୁ ବହୁ ତଥ୍ୟ ଯୋଗାଇପାରିଲା ।

ପାଭ୍‌ଲୋଭଙ୍କ ପୂରା ନାମ ଇଭାନ ପେଟ୍ରୋଭିଚ ପାଭଲୋଭ । ସେ ୧୮୪୯ ସେପ୍‌ଟେମ୍ବର ୧୪ ତାରିଖରେ ଜନ୍ମଗ୍ରହଣ କରି-ଥିଲେ । ରୁଷ ଅନ୍ତର୍ଗତ ରିସାନ ନାମକ ଏକ ଗ୍ରାମରେ ତାଙ୍କ ବାପା ଥିଲେ ଜଣେ ଧର୍ମଯାଜକ । ରିସାନ୍ ଚର୍ଚ୍ଚସ୍କୁଲରେ ପିଲା-ଦିନେ ପାଠ ପଢ଼ିଥିଲେ । ପିଲାଟିଦିନୁ ପାଠପଢ଼ାରେ ତାଙ୍କର ଝୁଙ୍କ ଥିଲା । ଛପା କାଗଜ ଖଣ୍ଡିଏ ପାଇବା ମାତ୍ରେ ସେ ତାକୁ ପୂରା ନ ପଢ଼ି ଛାଡ଼ୁ ନଥିଲେ । ଯେ କୌଣସି ବିଷୟ ହେଉ ନା କାହିଁକି ଜାଣିବାଲାଗି ତାଙ୍କର ଇଚ୍ଛା ବଳବତୀ ଥିଲା । ସ୍କୁଲ ଲାଇବ୍ରେରୀରେ ଘଣ୍ଟା ଘଣ୍ଟା ଧରି ବସି ରୁଷ ବୈଜ୍ଞାନିକ-ମାନଙ୍କ ଜୀବନୀ ପଢ଼ିବାଲାଗି ପିଲାଦିନୁ ଭଲପାଉଥିଲେ । ପିଲା-ଦିନରୁ ତାଙ୍କର ଉଚ୍ଚାଭିଳାଷ ରହି ଆସିଥିଲା । ବାପାଙ୍କୁ କହୁ-ଥିଲେ, ବଡ଼ ହେଲେ ସେ ହେବେ ଜଣେ ଡାକ୍ତର ।

ଜି. ଏଚ. ଲିଓ୍ୱେସ୍‌ଙ୍କ 'ପ୍ରାକ୍‌ଟିକାଲ ଫିଜିଓଲଜି' ପୁସ୍ତକ ପଢ଼ିବା ପରେ ଶରୀର ଭିତରେ କି କ୍ରିୟା ପ୍ରକ୍ରିୟା ଚାଲିଛି ତାହା ଜାଣିବାପାଇଁ ବ୍ୟଗ୍ର ହୋଇ ଉଠିଥିଲେ । ଏ ବହିଟିକୁ ସେ ଏତେ ଭଲ ପାଉଥିଲେ ଯେ, ଜୀବନସାରା ସେ ଏହାକୁ ତକିଆ ତଳେ ରଖି ଶୋଉଥିଲେ । ଅନ୍ୟ କେହି ମାଗିଲେ ଅନ୍ୟ ବହି ଦେଉଥିଲେ, ଏ ବହିକୁ ପାଖରୁ ଛାଡ଼ୁ ନ ଥିଲେ । ବାସ୍ତବରେ ଏହି ପୁସ୍ତକ ହିଁ ତାଙ୍କ ଜୀବନରେ ଉନ୍ନତିର ମୂଳଦୁଆ ହୋଇଥିଲା ।

ପାଭ୍‌ଲୋଭଙ୍କ ସ୍କୁଲ ପଢ଼ା ଶେଷହେଲା । ରିଆସନରୁ ସେ ଗଲେ ପିଟର୍ସ୍‌ବର୍ଗକୁ । ପିଟର୍ସବର୍ଗର ନାଁ ବଦଳି ଏବେ ହୋଇଛି

ନେଲ୍‌ନ୍‌ଗ୍ରାଡ । ପିଟସ୍‌ବର୍ଗ ବିଶ୍ୱବିଦ୍ୟାଳୟରେ କଲେଜ ପଢ଼ା ଆରମ୍ଭ କରି, ତାପରେ ନାଁ ଲେଖାଇଲେ ମେଡ଼ିକାଲ କଲେଜରେ ।

୧୮୭୮ ମସିହାରେ ଛାତ୍ରାବସ୍ଥାରେ ସେ ଯେଉଁ କାର୍ଯ୍ୟ କରୁଥିଲେ, ସେଥିରୁ ଜଣାପଡ଼ୁଥିଲା ଯେ, ତାଙ୍କର ମୌଳିକ ଚିନ୍ତାଧାରା ରହିଛି । ଏ କଥା ମଧ୍ୟ ତାଙ୍କ ଶିକ୍ଷକମାନେ ଲକ୍ଷ୍ୟ କରିଥିଲେ । ସେମାନେ ପରସ୍ପର ମଧ୍ୟରେ କୁହାକୁହି ହେଉଥିଲେ ଯେ ପାଭ୍‌ଲୋଭ୍ ବଡ଼ ହେଲେ ଦେଶର ଜାତିର ନାଁ ରଖିବ ।

ଠିକ୍ ତା ପରବର୍ତ୍ତୀ ବର୍ଷ, ଅର୍ଥାତ ୧୮୭୯ରେ ପାଭ୍‌ଲୋଭ୍ ଜଣେ ଡାକ୍ତର ଭାବରେ ଯୋଗ୍ୟତା ହାସଲ କଲେ ! ସଙ୍ଗେ ସଙ୍ଗେ ଯୋଗଦେଲେ ସାମରିକ ମେଡ଼ିକାଲ ଏକାଡେମୀରେ ଡକ୍‌ଟର ବୋର୍‌କିନଙ୍କ ସହକାରୀ ଭାବରେ । ଡକ୍‌ଟର ବୋରକିନ ମଧ୍ୟ ବଡ଼ ବିଚିତ୍ର ପ୍ରକାର ଲୋକଥିଲେ । ସାମରିକ କର୍ମଚାରୀମାନଙ୍କ ଚିକିତ୍ସା, ପାଠ ପଢ଼ାଇବା ସାଙ୍ଗକୁ ଗବେଷଣା କାମ ମଧ୍ୟ ଚଳାଉଥିଲେ ସେ । ବିଶେଷତଃ ପଶୁମାନଙ୍କ ସଂପର୍କରେ ତାଙ୍କର ଗବେଷଣା ଚାଲିଥିଲା ଅଧିକ । ପାଭ୍‌ଲୋଭ୍ ମଧ୍ୟ ଏଥିରେ ଲାଗିଗଲେ । ଡକ୍‌ଟର ବୋର୍‌କିନ ଡକ୍‌ଟର ପାଭ୍‌ଲୋଭଙ୍କ ଭଳି ଜଣେ ମେଧାବୀ ଲୋକକୁ ପାଇଯିବା ପରେ ତାଙ୍କୁ ତାଙ୍କର ଗବେଷଣାର ସମସ୍ତ ଦାୟିତ୍ୱ ଦେଇ ନିଶ୍ଚିନ୍ତ ହୋଇଗଲେ ।

ଡକ୍‌ଟର ପାଭ୍‌ଲୋଭ୍ ଭାଇବୋର୍ଗ ହସ୍‌ପିଟାଲର ନିକଟ ଦୂରରେ ଗୋଟିଏ ଛୋଟ ଜାଗାରେ ତାଙ୍କର ଗବେଷଣା ଚଳା-

ଭଲେ । ହୃତ୍‌ଯନ୍ତ୍ର ସହିତ ଦେହର ସ୍ନାୟୁଗୁଡ଼ିକ ସଂଯୁକ୍ତ କରୁଥିବା ଶିରା ପ୍ରଶିରା ଓ ଧମନୀଗୁଡ଼ିକ ସମ୍ପର୍କରେ ତାଙ୍କର ମୁଖ୍ୟତଃ ଗବେଷଣା ଚାଲିଲା । ଏ ଶିରାପ୍ରଶିରା ଗୁଡ଼ିକ କିପରି ଭାବରେ ହୃତ୍‌-ଯନ୍ତ୍ରକୁ ନିୟନ୍ତ୍ରଣ କରୁଛନ୍ତି ।

ଏହି ଶିରା ପ୍ରଶିରା ଦେଇ ହେଉଥିବା ରକ୍ତ ପ୍ରବାହର ରୂପ ବଦଳଯାଇପାରେ; କିନ୍ତୁ ଏହି ରୂପର ପରିବର୍ତ୍ତନ ସାଙ୍ଗକୁ ହୃତ୍‌-ସ୍ପନ୍ଦନର "ଫ୍ରିକ୍ୱେନ୍‌ସି"ର ପରିବର୍ତ୍ତନ ହେଉନାହିଁ ।

୧୮୮୩ରେ ପିଟର୍ସବର୍ଗ ବିଶ୍ୱବିଦ୍ୟାଳୟର ଏମ୍. ଡ଼ି. ବା ଡ଼କ୍ଟର ଅଫ ମେଡିସିନ ଡ଼ିଗ୍ରୀ ଲାଭ କଲେ । ୧୮୮୪ରେ ସେ ଶରୀରତତ୍ତ୍ୱ ( ଫିଜିଓଲଜି ) ବିଷୟରେ "ପ୍ରାଇଭେଟ-ଡ଼ୋଜେଣ୍ଟ" ବା ଅବୈତନିକ ଭାବରେ ନିଯୁକ୍ତି ପାଇଲେ । ଅବୈତନିକ ହେଲେ କଣ ହେଲା, ଏଥିଲାଗି ତାଙ୍କୁ ବିଦେଶ ବୁଲିବାପାଇଁ ଏକ ବୃତ୍ତି ମିଳିଲା । ଏହି ବୃତ୍ତି ପାଇ ସେ ଦୁଇବର୍ଷ ପାଇଁ ବିଦେଶକୁ ଯାଇ-ପାରିଲେ । ଜର୍ମାନୀ ଗଲେ । ଜର୍ମାନ ପ୍ରଫେସରମାନଙ୍କ ସହିତ ମିଶି ଜର୍ମାନୀରେ ଗବେଷଣା କଲେ । ଜର୍ମାନ ଭାଷା ଶିକ୍ଷାକଲେ ସତ, କିନ୍ତୁ ଭଲ ଜର୍ମାନ କହିପାରୁ ନ ଥିଲେ । ବରଂ ଜର୍ମାନୀ ଯାଇ ଇଂରାଜୀ ଭାଷା ଶିକ୍ଷା କରିବାରେ ତାଙ୍କର କିଛିଟା ଲାଭ ହେଲା । ସେ ଅଳ୍ପ ଅଳ୍ପ ଇଂରାଜୀ ଭାଷା କହିଲେ, ଲେଖିପାରିଲେ ମଧ୍ୟ । କିନ୍ତୁ ସବୁ ଅଳ୍ପ ଅଳ୍ପ । ଜର୍ମାନ ଅଳ୍ପ, ଇଂରାଜୀ ଅଳ୍ପ । ଏହି ବିଦେଶୀ ଭାଷା ଶିକ୍ଷା କରିପାରି ନ ଥିବାରୁ, ବିଶେଷ କରି ଇଂରାଜୀ ଭଲ ଜାଣି ପାରି ନଥିବାରୁ, ବାହାରର ବୈଜ୍ଞାନିକମାନେ ତାଙ୍କୁ

ଜାଣିବାଲାଗି ବହୁବର୍ଷ ଲାଗିଗଲା । ପାଭ୍‌ଲୋଭଙ୍କ ଜୀବନର ଶେଷ ଆଡ଼କୁ କିନ୍ତୁ ସେ ପୃଥିବୀର ଜଣେ ବୈଜ୍ଞାନିକ ଭାବରେ ପ୍ରତିଷ୍ଠା ଲାଭକଲେ ।

ସ୍ୱଦେଶକୁ ଫେରିବା ପରେ ପାଭ୍‌ଲୋଭ ମନୁଷ୍ୟ ବା ଜୀବ-ଜନ୍ତୁଙ୍କ ପାକସ୍ଥଳୀ ବା ଜୀର୍ଣ୍ଣସ୍ଥଳୀ ସମ୍ପର୍କରେ ଗବେଷଣା ଚଳାଇଲେ । ୧୮୯୦ରେ "ଇମ୍ପିରିଆଲ ଇନଷ୍ଟିଚ୍ୟୁଟ ଅଫ୍ ଏକ୍-ସପେରିମେଣ୍ଟାଲ ମେଡ଼ିସିନ୍" ନାମକ ଏକ ସଂସ୍ଥା ଗଠିତ ହେଲା । ୧୮୯୧ ଖ୍ରୀଷ୍ଟାବ୍ଦରେ ଶରୀରତତ୍ତ୍ୱ ବା ଫିଜିଓଲଜି ବିଭାଗର ଡିରେକ୍‌ଟର ଭାବରେ ସେ ନିଯୁକ୍ତ ହେଲେ ।

ଆପଟେକାର୍‌ଙ୍କ ଦ୍ୱୀପରେ ଗୋଟିଏ ଗ୍ରେଟ ଘରେ ତାଙ୍କ ଅଫିସ ଖୋଲିଲା । ଏଠାରେ ସେ ପ୍ରଥମ କ୍ଲିନିକ ଓ ଅପରେଟିଂ ଥିଏଟର ଖୋଲିଲେ । କେବଳ ପଶୁମାନଙ୍କ ସମ୍ପର୍କରେ ଗବେଷଣା କରିବାଲାଗି ଏ ଧରଣର କ୍ଲିନିକ କିମ୍ବା ଅପରେସନ ଥିଏଟର ପୃଥିବୀରେ ଅନ୍ୟ କୌଣସିଠାରେ ସେତେବେଳକୁ ଖୋଲି ନ ଥିଲା । ଏହା ହେଲା ପ୍ରଥମ ।

ପାଭ୍‌ଲୋଭ ପ୍ରଥମେ କୁକୁରର ଶରୀର ନେଇ ଗବେଷଣା ଆରମ୍ଭ କଲେ । ସେତେବେଳେ ତାଙ୍କର ରୋଜଗାର ପରିମାଣ ବହୁତ କମ୍ ଥିଲା । ତେଣୁ ଗବେଷଣା ବାବଦରେ ଅଧିକ ଖର୍ଚ୍ଚ କରିପାରୁ ନ ଥିଲେ । ଆୟ କମ ଦୃଷ୍ଟିରୁ ନିଜେ ଖୁବ୍ କଷ୍ଟରେ ଚଳୁଥିଲେ । ବାଟରେ ବହୁତ ବୁଲା କୁକୁର ବୁଲୁଥିବାରୁ ସେ

ନେକ ଲଗାଇ ସେ ସବୁ କୁକୁରଙ୍କୁ ଧରି ଆଣୁଥିଲେ । ଏଥି-ନିମିତ୍ତ ତାଙ୍କର ନେକ ଲଗାଇବା କାମରେ ଯାହାକିଛି ଖର୍ଚ୍ଚ ହେଉଥିଲା । ପାଭଲୋଭ ଏହି ଭୁଲା କୁକୁରଗୁଡ଼ିକୁ ନିଜ ଘର ବା କ୍ଳିନିକକୁ ନେଇ ସେଗୁଡ଼ିକର ବିଶେଷ ଯତ୍ନ ନେଉଥିଲେ । ପଶୁଙ୍କ ପ୍ରତି ତାଙ୍କର ଏତେ ସ୍ନେହ ମମତା ଥିଲା ଯେ, କୌଣସି ମଣିଷ ପ୍ରତି ତାହା ମଧ୍ୟ ସମ୍ଭବ ନୁହେଁ । ଏପରି କି ସେ କୁକୁର-ଗୁଡ଼ିକୁ ଅତି ସ୍ନେହରେ ବୁଝି ପକାଉଥିଲେ ।

ସେ ତାଙ୍କ ଗବେଷଣା କାର୍ଯ୍ୟ ନିମିତ୍ତ କୁକୁରଗୁଡ଼ିକୁ ଉପରେ ଲଗାଉଥିଲେ, ତାହା ଜାଣିବା କଥା ! ମଣିଷ ଦେହରେ ଜଣେ ଡାକ୍ତର ଯେପରି ସେ ଅସ୍ତ୍ରୋପଚାର କଲାବେଳେ ଯେପରି ଯତ୍ନ ନେଉଥିଲେ, ଠିକ୍ ପଶୁ ଦେହରେ ଅସ୍ତ୍ରୋପଚାର କଲାବେଳେ ପଶୁର ମଧ୍ୟ ସେତିକି ଯତ୍ନ ନେଉଥିଲେ । ତାହା ଥିଲା ତାଙ୍କର ବିଶେଷ ଗୁଣ ।

ସେ କୁକୁରମାନଙ୍କ ଦେହରେ କୌଣସି ଅସ୍ତ୍ର ପ୍ରୟୋଗ କରିବା ପୂର୍ବରୁ ନେକ ଲଗାଇ ତା ଦେହ ପରିଷ୍କାର ପରିଚ୍ଛନ୍ନ କରୁଥିଲେ । ତା ଫଳରେ କୁକୁରଗୁଡ଼ିକ ଅପରେସନ ପରେ ଆଉ କୌଣସି ରୋଗରେ ଆକ୍ରାନ୍ତ ନ ହୋଇ ଶୀଘ୍ର ଯେ କୌଣସି ରୋଗରୁ ଚିକିତ୍ସା କରାଯିବା ମାତ୍ରେ ଭଲ ହୋଇ ଯାଉଥିଲେ । ତାଛଡ଼ା ସେ ଜାଣିପାରୁଥିଲେ ଯେ; ଅପରେସନ ବେଳେ ଯଦି ପଶୁଙ୍କୁ ଅଧିକ କଷ୍ଟ ଦିଆଯାଏ, ଉତ୍ତେଜିତ ହୋଇପଡ଼ନ୍ତି, ତାହା-ହେଲେ ଆବଶ୍ୟକ ଫଳ ମିଳିବ ନାହିଁ । କିନ୍ତୁ ଗୋଟିଏ ଅସୁବିଧା

ହେଲା, ପାକସ୍ଥଳୀ ଉପରେ ସେ ଗବେଷଣା ଚଳାଇଥିବାରୁ ପଶୁ ବା କୁକୁର ଦେହକୁ ସେମାନଙ୍କ ପାକସ୍ଥଳୀ ଦେହରେ ନିଶା ଦେଇ ଶୁଆଇ ରଖିଦେବ ନାହିଁ ।

କୁକୁରର ପାଟିରେ କେତେ ସମୟରେ କେତେ ଜୀର୍ଣ୍ଣକାରୀ ରସ (ଡାଇଜେଷ୍ଟିଭ ଜୁସ) ବାହାରି ହୋଇପାରୁଛି, ସେହି କଥାହିଁ ଦେଖିବା ଥିଲା ପାଭଲୋଭଙ୍କ କାମ । ତେଣୁ ସେ କୁକୁରଗୁଡ଼ିକ ଦେହରେ ଅସ୍ତ୍ରୋପଚାର ପରେ ସେଗୁଡ଼ିକୁ ଖୁବ୍ ଯତ୍ନସହରେ ରଖାଉଥିଲେ । ଏଥିଲାଗି କୁକୁରଗୁଡ଼ିକ ପୂର୍ବଭଳି ସୁସ୍ଥ ହେବାକୁ ପଡୁଥିଲା । ଭଲ ନଜର ଦେବାକୁ ପଡୁଥିଲା । ତାଙ୍କର ସହକାରୀ ବା ଆସିଷ୍ଟାଣ୍ଟମାନେ ଅପରେସନ ପରେ କୁକୁରଗୁଡ଼ିକ ପ୍ରତି ହୁଏତ ଅବହେଳା କରିପାରନ୍ତି, ଆଶଙ୍କା କରି ସେଗୁଡିକୁ ତାଙ୍କ ଘରକୁ ନେଇ ନିଜ ସ୍ତ୍ରୀ ଜିମା କରିଦେଉଥିଲେ । ତାଙ୍କ ସ୍ତ୍ରୀ ନିଜ ପିଲାଙ୍କ ଭଳି କୁକୁରଗୁଡ଼ିକର ଯତ୍ନ ନେଉଥିଲେ ।

ପାଭଲୋଭ କୁକୁରଟିର ଗଳା କମ୍ବା ପେଟ ଭିତରେ କୌଶଳ କ୍ରମେ ଏକ ରବର ନଳୀ ଖଞ୍ଜି ତାର ଜୀର୍ଣ୍ଣକାରୀ ଗ୍ରନ୍ଥିମାନଙ୍କରୁ ବାହାରୁଥିବା ରସ ବା ଲାଳର ନମୁନା ସଂରକ୍ଷଣ କଲେ । ଏହିଭଳି ସ୍ଥାନରେ ବିଶେଷ ଯତ୍ନ ନେବାରେ ସେ ପ୍ରକୃତ ଜୀର୍ଣ୍ଣକାରୀ ରସ ବା ଲାଳକୁ ସଂଗ୍ରହ କରିପାରିଥିଲେ । ଏହି ରସ ଲାଳ ଜିନିଷଟି କ'ଣ, ଏହା କିପରି ଖାଦ୍ୟକୁ ହଜମ କରାଉଛି ତାହା ପରୀକ୍ଷା ନିରୀକ୍ଷା କରି ଜାଣିପାରିଲେ । ସେ ପର୍ଯ୍ୟନ୍ତ ଏହା ଏକ ରହସ୍ୟ ହୋଇ ରହିଥିଲା ।

ପେ ଜାଣିପାରିଲେ ଯେ, ଦେହ ଭିତରେ କେତେକ ରସାସ୍ରକ ପ୍ରକ୍ରିୟା ଦ୍ୱାରା ଏହି ଜଳ ହୋଇପାରୁଛି ଏବଂ ଏହି ରସାସ୍ରକ ପ୍ରକ୍ରିୟା ଦ୍ୱାରା ହିଁ ମଣିଷର ଖାଦ୍ୟ ପଦାର୍ଥ ଜୀର୍ଣ୍ଣ ହୋଇପାରୁଛି । ଗ୍ଲାଣ୍ଡ ବା ଦେହର ଗ୍ରନ୍ଥି ଗୁଡ଼ିକରୁ ଏହି ରସ ବା ଜଳ ସବୁ ବାହାରିବା ପରେ ଦେହ ଭିତରେ ଏକ ପେଷଣ କ୍ରିୟା ହେଉଛି । ଏହି ପେଷଣ ଦ୍ୱାରା ସବୁ ଜିନଷ, ଅର୍ଥାତ୍ ଯାହା ପାଟିବାଟେ ଦେଇ ପେଟକୁ ଯାଉଛି, ଜୀର୍ଣ୍ଣ ହୋଇଯାଉଛି । ପ୍ରଥମ କାର୍ଯ୍ୟ ଆରମ୍ଭ ହେଉଛି ଜଭରୁ । ଜଭ ପ୍ରଥମେ ଖାଦ୍ୟକୁ ସ୍ୱେଦାଇବା ବେଳେ ପାଟିର ସ୍ତରଆଡ଼ୁ ଜୀର୍ଣ୍ଣକାରୀ ରସ ବା ଜଳ ବାହାରି ଏହାକୁ ପେଷୁଛି—ଏହି ପେଷଣ ବା ଚର୍ବଣକ୍ରିୟା ପରେ ତାହା ପେଟକୁ ଯାଉଛି । ପେଟରେ ମଧ୍ୟ ସେହିଭଳି କାର୍ଯ୍ୟ ଚାଲୁଛି ।

ପାଭ୍‌ଲୋଭଙ୍କ ଆଉ ଏକ ଜୀର୍ଣ୍ଣ ସମ୍ପର୍କୀୟ ପରୀକ୍ଷା ପ୍ରତି ଲୋକଙ୍କ ଆଗ୍ରହ ସୃଷ୍ଟି ହୋଇଥିଲା । ରାତ୍ରିଭୋଜନ କାଳରେ ଶୃଙ୍ଖଳିତ ଭାବରେ କାହାପରେ କ'ଣ ଖିଆଯିବ ତାର ଏକ ପରମ୍ପରା ରହିଆସିଛି । ପ୍ରଥମେ ସୁପ୍ ବା ପରିବା କିମ୍ବା ବଢ଼ିଲ୍ଲ ଜିନଷର ଝୋଳ ଖିଆଯାଏ, ତାପରେ ରୋଟି ବା ଭାତ, ମାଂସ ଏବଂ ଶେଷରେ ଖିଆଯାଏ ମିଠା । ଏହି କ୍ରମ ବା ପ୍ରକ୍ରିୟାରେ ବହୁ କାଳରୁ ବଢ଼ିଲ୍ଲ ଦେଶରେ ଖିଆପିଆ ବ୍ୟବସ୍ଥା ପ୍ରଚଳିତ ରହିଆସିଛି । କିନ୍ତୁ କାହିଁକି ଏହା କରାଯାଏ, କେହି ଜାଣନ୍ତି ନାହିଁ । ଏହାକୁ ଏକ ପଦ୍ଧତି ବା ପ୍ରଥା ଭାବରେ ଗ୍ରହଣ କରାଯାଇଥାଏ । କିନ୍ତୁ ପାଭ୍‌ଲୋଭ ପରୀକ୍ଷାକରି ଶେଷରେ ଦେଖିଲେ ଯେ, ଏହି କ୍ରମରେ ଖାଦ୍ୟ

ଖାଇବାଟା ଭଲ । ଏହା ହାଗ୍ ସହଜରେ ଏବଂ ସମ୍ପୂର୍ଣ୍ଣ ଭାବରେ ଖାଦ୍ୟ ଜୀର୍ଣ୍ଣ ହୋଇପାରେ । ତା'ଛଡ଼ା ଅନ୍ୟ କ୍ରମ ଧରିଲେ ଅଜୀର୍ଣ୍ଣ ହେବା ସାର ହେବ ।

ସେ କହିଲେ ଯାହା ରୁଚିକର, ସୁସ୍ୱାଦୁ ତାହା ଖାଇଲେ ଭଲ ଭାବରେ ଜୀର୍ଣ୍ଣ ହୁଏ । ଯାହା ଅରୁଚିକର ତାହା ସହଜରେ ଜୀର୍ଣ୍ଣ ହୁଏ ନାହିଁ । ରୋଗୀକୁ ସବୁ ଅରୁଚି ବୋଧହୁଏ—କାରଣ ତାର ଜୀର୍ଣ୍ଣଶକ୍ତି ନଥାଏ । ଅଧିକ ମସଲ୍ ମସଲା, ରଙ୍ଗ ବେରଙ୍ଗର ତିଆରି ବା ଖାଦ୍ୟ ଜୀର୍ଣ୍ଣ ହୁଏନାହିଁ । କାରଣ ଦେହର ଗ୍ରନ୍ଥିଗୁଡ଼ିକ ଏସବୁ ଖାଦ୍ୟପାଇଁ ଆକୃଷ୍ଟ ନ ହେବାରେ ଜୀର୍ଣ୍ଣକାରୀ ରସ ବା ଲାଳ ଯଥେଷ୍ଟ ପରିମାଣରେ ନିର୍ଗତ ହୁଏନାହିଁ ।

୧୮୯୨ଠାରୁ ୧୮୯୭ ଭିତରେ ସେ ଯାହା ଯାହା ଗବେଷଣା କରିଥିଲେ, ସେ ସମ୍ପର୍କରେ ଗୁଡ଼ିଏ ପ୍ରବନ୍ଧ ଲେଖିଲେ । ମୁଖ୍ୟତଃ ଜୀର୍ଣ୍ଣ ପ୍ରଣାଳୀ ସମ୍ପର୍କରେ । ଏସବୁ ପ୍ରବନ୍ଧ ଲେଖାଗଲା ଋଷୀୟ ଭାଷାରେ । କିନ୍ତୁ ଋଷୀୟ ଭାଷା ଆନ୍ତର୍ଜାତିକ କ୍ଷେତ୍ରରେ ସଂଯୋଗ ରକ୍ଷାକାରୀ ଭାଷା ହୋଇନଥିବାରୁ ତାହା କେବଳ କେତେଜଣ ଋଷୀୟଭାଷାଭିଜ୍ଞ ବୈଜ୍ଞାନିକଙ୍କ ମଧ୍ୟରେ ଆବଦ୍ଧ ରହିଲା । ସେହିମାନେ ପଢ଼ିଲେ, ସେହିମାନେ ପ୍ରଶଂସା କଲେ । କିନ୍ତୁ ଅନ୍ୟ ଦେଶର ବୈଜ୍ଞାନିକଙ୍କ ମଧ୍ୟରେ ତାଙ୍କର ଗବେଷଣା ଅବୋଧ ରହିଗଲା । ୧୮୯୭ରେ "ଫିଜିଓଲଜି ଅଫ୍ ଡାଇଜେଷ୍ଟିଭ୍ ଗ୍ଲାଣ୍ଡ୍" ଶିରୋନାମାରେ ଏହି ପ୍ରବନ୍ଧଗୁଡ଼ିକ ଏକ ପୁସ୍ତକ ଆକାରରେ ପ୍ରକାଶ ପାଇଲା ଜର୍ମାନ ଓ ଇଂରେଜୀ ଭାଷାରେ ।

ଭେଷଜ ବା ଔଷଧବିଜ୍ଞାନ ଇତିହାସରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କଲା । କ୍ରମଶଃ ପାଭ୍‌ଲୋଭ୍ ସମଗ୍ର ଜଗତରେ ବିଖ୍ୟାତ ହୋଇ ଉଠିଲେ । ସେ ପ୍ରମାଣିତ କରି ଦେଖାଇ ଦେଲେ ଯେ, କୁକୁରର ଜୀର୍ଣ୍ଣ ପ୍ରଣାଳୀ ସମ୍ପର୍କରେ ପାଭ୍‌ଲୋଭ୍ ଯେଉଁ ଜ୍ଞାନ ଲାଭକଲେ, ତାହା ମନୁଷ୍ୟ ଶରୀରଲାଗି ମଧ୍ୟ ପ୍ରଯୁଜ୍ୟ । ପ୍ରକୃତରେ ତାଙ୍କର ଏହି ପରୀକ୍ଷା ଯଥାର୍ଥ ଓ ନିର୍ଭୁଲ କି ନୁହେଁ, ଏହା ଜାଣିବାଲାଗି ବହୁ-କାଳ ଲାଗିଗଲା । କାରଣ ପରୀକ୍ଷାମୂଳକ ଭାବରେ ଅସ୍ତ୍ରୋପଚାର କରିବା ମଣିଷ ଦେହରେ ସମ୍ଭବ ହୋଇ ପାରେନା ନାହିଁ । କିନ୍ତୁ ସମୟେ ସମୟେ ଅସ୍ୱାଭାବିକ ଭାବରେ କେତେକ ଦୁର୍ଘଟଣା ଘଟିଥାଏ ଏବଂ ଏହି ଦୁର୍ଘଟଣାର ସୁଯୋଗ ନେଇ ଡାକ୍ତର ବା ଭେଷଜ ବୈଜ୍ଞାନିକମାନେ ମନୁଷ୍ୟ ଦେହରେ ଅସ୍ତ୍ରୋପଚାର କରି ନାନା ପ୍ରକାରର ପରୀକ୍ଷା ନିରୀକ୍ଷା କରିଥାଆନ୍ତି । ସେମାନେ ଯେଉଁ ମନୁଷ୍ୟଟି ମରିବା ନିଶ୍ଚିତ ଜାଣନ୍ତି, ମରିବାର ଅଳ୍ପ ସମୟ ପୂର୍ବରୁ ଅସ୍ତ୍ରୋପଚାର କରି ନିଜର ନିର୍ଦ୍ଦିଷ୍ଟ ଓ ଅଭିଷ୍ଟ ଗବେଷଣା କରି-ଥାଆନ୍ତି । ଆତ୍ମୀୟ ସ୍ୱଜନମାନଙ୍କୁ ଧାରଣା ଦିଆଯାଏ ଯେ, ଆହତ ବ୍ୟକ୍ତି ବା ରୋଗୀକୁ ବଞ୍ଚାଇବା ଆଶାରେ ସେମାନେ ଅସ୍ତ୍ରୋପଚାର କରୁଛନ୍ତି ।

୧୮୯୦ରେ ସେ ଇନ୍‌ଷ୍ଟିଚ୍ୟୁଟ ଅଫ୍ ଏକସ୍‌ପେରିମେଣ୍ଟାଲ ମେଡ଼ିସିନ୍‌ରେ ନିଜର ଗବେଷଣା କାର୍ଯ୍ୟ ଚାଲୁ ରଖିବା ସଙ୍ଗେ ସଙ୍ଗେ ମିଲିଟାରି ମେଡ଼ିକାଲ ଏକାଡେମୀରେ ଶରୀରତତ୍ତ୍ୱ ବିଭାଗର ପ୍ରଫେସର ଭାବରେ ମଧ୍ୟ ନିଯୁକ୍ତି ପାଇଲେ ।

ପୃଥିବୀରେ ନୋବେଲ ପ୍ରାଇଜ ହେଉଛି ସବୁଠାରୁ ବଡ଼ ପୁରସ୍କାର । ଆର୍ଥିକ ଦୃଷ୍ଟିରୁ ଯେପରି ଏହା ସର୍ବାଧିକ, ସେହିଭଳି

ସମ୍ମାନ ଦୃଷ୍ଟିରୁ ମଧ୍ୟ ଏହା ସର୍ବୋତ୍କୃଷ୍ଟ । ୧୯୦୪ରେ ପାଭଲୋଭ ମେଡ଼ିସିନରେ ତାଙ୍କର ଉଲ୍ଲେଖଯୋଗ୍ୟ ଅବଦାନଲାଗି ଏହି ପୁରସ୍କାର ଲାଭ କଲେ । ୧୯୦୬ରେ ସେ ରୁଷ ବିଜ୍ଞାନ ଏକା-ଡ଼େମୀର ସଭ୍ୟଭାବରେ ନିର୍ବାଚିତ ହେଲେ ଏବଂ ୧୯୦୭ରେ ବ୍ରିଟିଶ ରୟାଲ ସୋସାଇଟିର ବିଦେଶୀ ସଭ୍ୟଭାବରେ ବରଣ୍ଣଗଲେ ।

ମନୁଷ୍ୟର ଜୀର୍ଣ୍ଣଶକ୍ତି ଓ ହଜମ ପ୍ରଣାଳୀ ସମ୍ପର୍କରେ ସେ ଯେଉଁ ଗବେଷଣା ଚଳାଉଥିଲେ, ତଦ୍ଦ୍ୱାରା ସେ ନୂଆ ନୂଆ ଗବେଷଣା ପାଇଁ ଓ ଆବିଷ୍କାର ଲାଗି ନୂଆ ନୂଆ ତଥ୍ୟ ପାଇଲେ । ସେ ଲକ୍ଷ୍ୟ କଲେ, ଖାଦ୍ୟ ପରଷା ହେବା ମାତ୍ରେ ମଣିଷର ପାଟିରୁ ହଜମି ଲାଳ ଗଡ଼ିଆସୁଚି; ଅଥଚ ଏହାକୁ ତା ଆଗରୁ ଉଠେଇ ନେଇଗଲେ ବନ୍ଦ ହୋଇଯାଉଛି । ପଶୁ ହେଉ ବା ମନୁଷ୍ୟ ହେଉ ଯଦି ସେ ଜାଣିଛି ଯେ ଖାଦ୍ୟ ଆଦୌ ପରସା ଯିବ ନାହିଁ, ତାହାହେଲେ ହଜମି ଲାଳ ଗଡ଼ିବାର ପ୍ରଶ୍ନ ସୁଦ୍ଧା ଉଠୁନାହିଁ । ଏଥିରୁ ଜଣାଯାଉଛି ଯେ, ଦେହରେ ଥିବା ଶିରା ପ୍ରଶିରା ବା ସ୍ନାୟୁ ଗୁଡ଼ିକର ମଧ୍ୟ ଲାଳ ଗଡ଼ିବା ପ୍ରକ୍ରିୟାରେ ଯଥେଷ୍ଟ ଭୂମିକା ରହିଛି । ତେଣୁ ସେ ଶରୀରର ସ୍ନାୟବିକ ବ୍ୟବସ୍ଥାର ଅଧ୍ୟୟନ ଆରମ୍ଭ କରିଦେଲେ । ଏ ସମ୍ପର୍କରେ ୧୮୦୩ ରେ ଆନ୍ତର୍ଜାତିକ ବିଜ୍ଞାନ କଂଗ୍ରେସରେ ପ୍ରଥମ ପ୍ରବନ୍ଧ ପାଠ କରିଥିଲେ । ଏହି କଂଗ୍ରେସ ମାଦ୍ରିଦଠାରେ ଅନୁଷ୍ଠିତ ହୋଇଥିଲା । ପରେ ୧୯୦୭ ରେ, ଅର୍ଥାତ୍ ଏହି କଂଗ୍ରେସର ତିନିବର୍ଷ ପରେ ରୁଷିଆ ସିପ ହସପିଟାଲରେ ହକ୍ସଲେ ବକ୍ତୃତା-

ମାଳାରେ ଯୋଗଦେଇ ଏ ସମ୍ପର୍କରେ ଏକ ପ୍ରବନ୍ଧ ପାଠ କରିଥିଲେ ।

ଖାଦ୍ୟକୁ ଦେଖିବା ମାତ୍ରେ ପଶୁ ବା ମନୁଷ୍ୟ ମନରେ ତଥା ଶରୀରରେ ଏକ "ଷ୍ଟିମୁଲସ" ବା ପ୍ରେରଣା ଜାଗ୍ରତ ହୋଇଥାଏ । ଏହି ଷ୍ଟିମୁଲସ୍ ବା ପ୍ରେରଣାରୁ ପାଟିରେ ଲାଳ ସୃଷ୍ଟି ହୁଏ । ସ୍କୁଲରେ ପୁରସ୍କାର ପାଇଲେ ଅଳସୁଆ ପିଲା ଯେପରି ଭଲ ପଢ଼ିବା ପାଇଁ ଉତ୍ସାହିତ ହୁଏ, ତା ମନରେ ପ୍ରେରଣା ଜାଗ୍ରତ ହୁଏ, ସେହିଭଳି ଖାଦ୍ୟ ଦେଖିବାମାତ୍ରେ ଏହି ପ୍ରେରଣା ବା ଷ୍ଟିମୁଲସ୍ ପାଟିକୁ ଖାଇବାଲାଗି ପ୍ରେରଣା ଦିଏ । ଲାଳ ଗଡ଼ିବା ହେଉଛି ଏହାର ପ୍ରଥମ ସୂଚନା । ମଣିଷ ଦେହରେ ଜ୍ଞାତସାରରେ ଏହି ପ୍ରକ୍ରିୟା ସୃଷ୍ଟି ହୁଏନା । ସେ ଚାହିଁଲେ ମଧ୍ୟ ଲାଳଗଡ଼ାକୁ ରୋକି ଦେଇ ନ ପାରେ । ଖାଦ୍ୟକୁ ଦେଖିବା— ଏ ଯେଉଁ କାର୍ଯ୍ୟଟି ତାର ପ୍ରକ୍ରିୟା ହେଉଛି ଲାଳ ଗଡ଼େଇବା । ଶରୀରର ଏହା ହେଉଛି ଏକ ସ୍ୱେଚ୍ଛାକୃତ କାର୍ଯ୍ୟ । "ରିଫ୍ଲେକ୍ସ ଆକ୍ସନ" ବା ପ୍ରତିଫଳନ କାର୍ଯ୍ୟ ଦ୍ୱାରା ଯେଉଁ ହଜମି ଲାଳ ଗଡ଼ିଆସେ ତାହା ଖାଦ୍ୟକୁ ଦେଖିବାରୁ ହୁଏ । ଇଏ ଦେଖୁ ଦେଖୁ ହେଉ ହେଉ ହୋଇଯାଏ । ପାଭ୍‌ଲୋଭ ଦେଖିଲେ ଅସାଧାରଣ ଭାବରେ ପ୍ରେରଣା ବା ଷ୍ଟିମୁଲସ୍ ମିଳିଲେ ମଧ୍ୟ ଏହି ପ୍ରକାର ହଜମି ଲାଳ ବାହାରି ଆସିପାରେ । ଯଦି ଗୋଟିଏ ଘଣ୍ଟି ସବୁବେଳେ ବାଜୁଥାଏ, ଆଲୁଅ ସବୁବେଳେ ଜଳେଇ ରଖାଯାଇଥାଏ, ଦେହର ଚମଡ଼ାକୁ ପୋଡ଼ା ଯାଉଥାଏ ଏବଂ ସେହି ସମୟରେ ଖାଦ୍ୟ ପରସାଯାଏ, ତାହାହେଲେ ମଧ୍ୟ ପ୍ରେରଣା ସୃଷ୍ଟି ହୋଇପାରିବ ଏବଂ ଅଳ୍ପ ବହୁତେ ହଜମି

ମୂଳ ନିର୍ଗତ ହେବ । ଏହାକୁ ଅସାଧାରଣ ପ୍ରେରଣା ବା ଷ୍ଟିମୁଲସ୍ କୁହାଯିବ । ଏଥିରୁ ଯେଉଁ ପ୍ରତିକ୍ରିୟା ସୃଷ୍ଟି ହେବ, ତାକୁ ନିର୍ଦ୍ଦିଷ୍ଟ ଅବସ୍ଥାଧୀନ ପ୍ରତିକ୍ରିୟା କୁହାଯିବ । କାରଣ ଏହା କେତେକ ଅସାଧାରଣ ଅସ୍ୱାଭାବିକ ପରିସ୍ଥିତି ବା ଅବସ୍ଥାରେ ହିଁ ସୃଷ୍ଟି ହୋଇଯାଏ । ଏହି ପ୍ରେରଣା ବା ଷ୍ଟିମୁଲସ୍ ବହୁପ୍ରକାରର । ଏହି ପ୍ରେରଣାକୁ ଉଦ୍ଦୀପନା, ଉତ୍ତେଜନା ମଧ୍ୟ କୁହାଯାଇ ପାରେ । ବଡ଼ ବଡ଼ ଭୋଜି ସମ୍ମାନନଙ୍କରେ ଖିଆପିଆ ଚାଲିଥିବା ବେଳେ ବାଜା ବଜାଯାଇଥାଏ । ଖାଇବାରେ ସଙ୍ଗୀତ ମଧ୍ୟ ସହାୟକ ହୋଇଥାଏ । ତେଣୁ ଆଲୁଅରେ ବା ଅନ୍ଧାରରେ ଖାଇବାକୁ ପ୍ରତ୍ୟେକ ଧର୍ମରେ ନିଷେଧ କରାଯାଇଛି । କାରଣ ଖାଦ୍ୟକୁ ଦେଖିଲେ ଯେଉଁ ସ୍ୱାସ୍ଥ୍ୟକ ସଞ୍ଚାଳନା ବା ଉଦ୍ଦୀପନା ସୃଷ୍ଟି ହୋଇଥାଏ, ଅନ୍ଧାରରେ ଖାଇଲେ ତାହା ହୁଏନାହିଁ । ଫଳରେ ହଜମି ମୂଳ ଖାଦ୍ୟରେ ନ ମିଶିବାରେ ଖାଦ୍ୟ ହଜମ ହୁଏ ନାହିଁ । ଅନେକ ଖାଇବାବେଳେ ଆଣ୍ଠୁକୁ ଆଉଁଷିବା ବା ସେହିଭଳି ଶରୀରର କୌଣସି ଅଙ୍ଗକୁ ଘଷୁଥିବା ଲକ୍ଷ୍ୟ କରାଯାଏ । ପରୋକ୍ଷ ଭାବରେ ହଜମ ପାଇଁ ଏହା ସହାୟକ । ଏ ସବୁ ହେଉଛି ଅସାଧାରଣ ପରିସ୍ଥିତି । ଅବସ୍ଥା ଅନୁଯାୟୀ ଯେଉଁ ପ୍ରତିକ୍ରିୟା ବା ପ୍ରତିଫଳନ ସୃଷ୍ଟି ହୁଏ, ତାହା ହେଉଛି ମସ୍ତିଷ୍କର ଗୋଟିଏ ନିର୍ଦ୍ଦିଷ୍ଟ ଅଂଶର ପ୍ରତିକ୍ରିୟା । ଏହି ଅଂଶଟି ହେଉଛି ସେରେବ୍ରାଲ ହେମିସ୍ଫିଅର ।

ଦେହର ଉଦ୍ଦୀପନା ଉତ୍ତେଜନା ବା ପ୍ରେରଣା କିପରି ଅବସ୍ଥା ଅନୁଯାୟୀ ବଦଳେ, ସେ ସମ୍ପର୍କରେ ପାଭଲୋଭ ବର୍ଷ ବର୍ଷ ଧରି ଗବେଷଣା ଚଳାଇଥିଲେ । ଏହା କିପରି ଥରେ ଥରେ ବିପରୀତ

ଫଳ ଦେଖାଏ ଏବଂ ହଜମି ଶକ୍ତିକୁ ନଷ୍ଟ କରିଦିଏ, ସେ ସମ୍ପର୍କରେ ସେ ବହୁଦିନ ଧରି ଗବେଷଣା କରିଥିଲେ । ମନୁଷ୍ୟ ଅତ୍ୟନ୍ତ ଉତ୍ତେଜିତ ହୋଇ ପଡ଼ିଲେ ଏବଂ କ୍ରୋଧାନ୍ଧ ହୋଇ ପଡ଼ିଲେ ଶରୀରର ଯେଉଁ ସ୍ନାୟୁଗୁଡ଼ିକରୁ ହଜମି ରସ ବାହାରେ । ତାହା ଦୁର୍ବଳ ଓ ନିଷ୍କ୍ରିୟ ହୋଇପଡ଼େ । ଫଳରେ ଓଲଟା ଫଳ ହୁଏ । ସେ ସମୟରେ ଖାଦ୍ୟ ଖାଇଲେ କିମ୍ବା ଖାଇସାରି ସ୍ନାୟୁକୁ ଏଭଳି ଭାବରେ ଉତ୍ତେଜିତ କରିଦେଲେ ଅଜୀର୍ଣ୍ଣ ହୁଏ ।

ଏ ସମ୍ପର୍କରେ ବହୁ ଆଲୋଚନା ଚାଲିଲା । ପାଭ୍‌ଲୋଭଙ୍କୁ ଏହି ତଥ୍ୟକୁ ପ୍ରମାଣିତ କରିବାଲାଗି ବହୁ ଦୃଷ୍ଟାନ୍ତ ଉପସ୍ଥାପିତ କରିବାକୁ ପଡ଼ିଲା । ସେ କହିଲେ, ମନୁଷ୍ୟର କେତେକ ଶାରୀରିକ କ୍ରିୟା ତାର ଜ୍ଞାତସାରରେ ହେଉଥିବା ଜଣାପଡ଼ିଲେ ମଧ୍ୟ ବାସ୍ତବରେ ସେ ସ୍ୱତଃ ହୋଇଥାଏ । ତାର ଏହି କ୍ରିୟାଗୁଡ଼ିକ ହେଉଚି ପ୍ରକୃତିଗତ— ଠିକ୍ ମେସିନଭଳି । ମଣିଷ ବା ପଶୁର ଇଚ୍ଛା ଅନୁଯାୟୀ ଏହି କ୍ରିୟା ଚାଲେ ବୋଲି ଯାହା କୁହାଯାଏ, ତାହା ପୂରାପୂରି ଠିକ୍ ନୁହେଁ । ତାର ଇଚ୍ଛା ବା ଚେତନା ଏହି କ୍ରିୟାଲାଗି ସାମାନ୍ୟ ଭାବରେ ଦାୟୀ ।

୧୯୧୪ରୁ ୧୯୧୮ ଭିତରେ ଯେଉଁ ଡାକ୍ତରମାନେ ଇନଷ୍ଟି- ଚ୍ୟୁଟରେ ପାଭ୍‌ଲୋଭଙ୍କ ସହିତ କାମ କରୁଥିଲେ, ଯୁଦ୍ଧ ଚାଲିଥିବାରୁ ରୁଷ ମେଡ଼ିକାଲ କରପସ୍‌ରେ ଯାଇ ଯୋଗଦେଲେ । ସେମାନେ ହସପିଟାଲମାନଙ୍କରେ କ୍ଷତ ବିକ୍ଷତ ଲୋକଙ୍କ ଚିକିତ୍ସାରେ ଲାଗିଲେ । ଇନ୍‌ଷ୍ଟିଚ୍ୟୁଟରେ ରହିଲେ ଏକାକୀ ପାଭ୍‌ଲୋଭ । ଜଣ ଜଣତା

ଫଳରେ ଧୀରସ୍ଥିର ମସ୍ତିଷ୍କରେ ସେ ବହୁ ବିଷୟ ଚିନ୍ତା କରିବାର ସୁଯୋଗ ପାଇଲେ । ୧୯୧୫ରେ ଏଭଳି ଏକ ଘଟଣା ଘଟିଲା, ଯେଉଁଥିରେ ସେ ବହୁ ବୈଜ୍ଞାନିକ ଆବିଷ୍କାର କରିପାରିଲେ ।

ପାଭଲୋଭ ଦିନେ ଇନ୍‌ଷ୍ଟିଚ୍ୟୁଟରେ ଥିବା ତାଙ୍କର ଜଣେ କର୍ମଚାରୀଙ୍କୁ କହିଲେ, ମୁଁ କେତେକ ପରୀକ୍ଷା କରିବାକୁ ଚାହୁଁଛି, ଗୋଟିଏ ବୁଲା କୁକୁରକୁ ଧରିଆଣ । ସେଦିନ ସେ ଲାବୋରେଟରୀକୁ ଆସିଲେ ଘଣ୍ଟାଏ ବିଳମ୍ବରେ । ଆସି ଦେଖିଲେ, ତାଙ୍କ ଲାବୋରେଟରୀ ବାରଣ୍ଡା ଖମ୍ବରେ କୁକୁରଟି ନିଘୋଡ଼ ନିଦରେ ଶୋଇଛି । ସେ କୁକୁର ଦେହରେ କି ପରୀକ୍ଷା କରିବେ ଭାବିଥିଲେ କେଜାଣି, ସେ ସବୁ ଭୁଲିଯାଇ ନିଦ ଉପରେ ଗବେଷଣା ଆରମ୍ଭ କରିଦେଲେ । ସେ ଭାବିଲେ ଯେ, ସେ ଯେଉଁ ପରୀକ୍ଷା କରିବେ ବୋଲି ଭାବିଥିଲେ, ସେ 'ପରୀକ୍ଷା' ନିଜେ ଶୋଇପଡ଼ିଛି । ନିଦ କାହାକୁ କେତେବେଳେ ମାଡ଼େ, ନିଦ କେତେ ପ୍ରକାରର, ଏହା ଏପର୍ଯ୍ୟନ୍ତ ଏକ ରହସ୍ୟ ହୋଇ ରହିଥିଲା । କୁକୁରର ନିଦ ତାଙ୍କୁ ନିଦ ବିଷୟରେ ଗବେଷଣାରେ ସୁଯୋଗ ଦେଲା । ନିଦର ବିଭିନ୍ନ ପ୍ରତିକ୍ରିୟାକୁ ଭିତ୍ତିକରି ସେ ନିଦସମ୍ପର୍କରେ ବହୁ ବର୍ଣ୍ଣନା ଚଳାଇଲେ । ଏ ସମ୍ପର୍କରେ ସେ ଏକ ବିରାଟ ପ୍ରବନ୍ଧ ଲେଖି ବସିଲେ । କୁକୁର ଶୋଇ ରହିଥାଏ; ତାଙ୍କର ପ୍ରବନ୍ଧ ଲେଖା ଚାଲିଥାଏ ।

୧୯୨୭ରେ ଏକ ଦୁର୍ଘଟଣାରେ ପାଭଲୋଭଙ୍କ ଜଙ୍ଘରେ ଭୀଷଣ ମାଡ଼ ବସିଲା । ଜଖମ ହୋଇଗଲା । ଅବଶ୍ୟ ସେ ଭଲହୋଇ ଗଲେ; କିନ୍ତୁ କୌଣସି କଠିନ କାର୍ଯ୍ୟ କରିପାରିଲେ ନାହିଁ । ଲାବୋରେଟରୀରେ ଠିଆହୋଇ କୌଣସି କାମ କରିପାରିଲେ

ନାହିଁ । ତେଣୁ ଶେଷରେ ପଡ଼ି ପଡ଼ି ସେ ବଡ଼ କଷ୍ଟରେ କାନ୍ଥକୁ କାନ୍ଥ ଉପରେ ସ୍ଥାପନ ଦେଇ ମସ୍ତିଷ୍କର ଗୃନ୍ଥୀ ସମ୍ପର୍କରେ ପୁସ୍ତକ ଲେଖିଲେ । ପରେ ଏହି ପୁସ୍ତକ ଛପାଗଲା । ବହିର ନାମ "ଲେକ୍‌ଚରସ୍ ଅନ୍ ଦ ଓ୍ୱର୍କ ଅଫ୍ ଦ ସେରେବ୍ରାଲ ହେମିସ୍ପିୟର । ବହିଟି ଲେଖାସିବାର ବହୁ ବର୍ଷ ପରେ ଅର୍ଥାତ୍ ୧୯୨୭ରେ ଯାଇ ଛପାଗଲା । କାରଣ ସେ ଥରକୁ ଥର ଏହି ପୁସ୍ତକଟି ସଂଶୋଧନ କରୁଥିଲେ । ଅନ୍ୟମାନେ ଏହାକୁ ଶୀଘ୍ର ଛାପିବା ପାଇଁ ଯେତେ ଅନୁରୋଧ କଲେ ମଧ୍ୟ ସେ ଛାପିବା ପାଇଁ ଦେଉ ନଥିଲେ । ଶେଷରେ ସେ ରାଜି ହେଲେ ।

୧୯୧୭-୧୮ରେ ରୁଷରେ ଏକ ବିରାଟ ବିପ୍ଳବ ଦେଖାଦେଲା । ଜାର୍ ଶାସନ ଲୋପପାଇ ଗଠିତ ହେଲା, 'ସୋଭିଏତ ୟୁନିୟନ ସୋସଲିଷ୍ଟ ରିପବ୍ଲିକ୍ ।'

ପାଭଲୋଭଙ୍କ ସମ୍ମାନ ଶେଷକୁ ଏତେ ଉଚ୍ଚରେ ଥିଲା ଯେ, ବିପ୍ଳବ ବେଳେ ବୈଜ୍ଞାନିକମାନଙ୍କ ଯେଉଁ ଦଶା ହୋଇଥାଏ ସେଥିରୁ ସେ ରକ୍ଷା ପାଇଥିଲେ । ଏହାର ୧୨୦ ବର୍ଷ ପୂର୍ବେ ଫରାସୀ ବିପ୍ଳବ ବେଳେ ସେ ଦେଶରେ ବହୁ ବୈଜ୍ଞାନିକଙ୍କୁ ପ୍ରାଣବଳୀ ଦେବାକୁ ପଡ଼ିଥିଲା । ରୁଷ୍ ବିପ୍ଳବ ପରେ ସମସ୍ତ ପ୍ରକାର ବୈଜ୍ଞାନିକ ଗବେଷଣା ସରକାରଙ୍କ ନିୟନ୍ତ୍ରଣାଧୀନ ହେଲା, ସବୁ ଯୋଜନା ଯୁଦ୍ଧ ଅନ୍ତର୍ଭୁକ୍ତ ହେଲା । କିନ୍ତୁ ପାଭଲୋଭଙ୍କୁ ଛାଡ଼ି ଦିଆଗଲା । ସେ ନିଜ ଇଚ୍ଛାନୁଯାୟୀ ଯେ କୌଣସି ଗବେଷଣା ଚଳାଇ ପାରିବେ, ସରକାର କୌଣସି ହସ୍ତକ୍ଷେପ କରିବେ ନାହିଁ ବୋଲି ତାଙ୍କୁ ଅଭୟବାଣୀ ଦିଆଗଲା ।

୧୯୨୪ ବେଳକୁ ପାଭଲୋଭଙ୍କୁ ୭୫ ବର୍ଷ ବୟସ । ଋଷ ବିପ୍ଳବର କର୍ଣ୍ଣଧାର ଲେନିନ୍ ଏକ ସ୍ୱତନ୍ତ୍ର ଘୋଷଣା କଲେ ଯେ ପାଭଲୋଭଙ୍କ ବୈଜ୍ଞାନିକ ଆବିଷ୍କାର ଲାଗି ରୁଷର ଜନତା ସରକାର ତାଙ୍କୁ ଅଭିନନ୍ଦନ ଜ୍ଞାପନ କରୁଛି । ପାଭଲୋଭଙ୍କ ଗତ କୋଡ଼ିଏ ବର୍ଷର କୃତିତ୍ୱକୁ ପୁସ୍ତକ ଆକାରରେ ପ୍ରକାଶ କରିବା ଲାଗି ସେ “ଷ୍ଟେଟ ପବ୍ଲିସିଂ ହାଉସ୍”କୁ ନିର୍ଦ୍ଦେଶ ଦେଲେ । ଏହା ଏକ ଗ୍ରନ୍ଥାବଳୀ ଆକାରରେ ପ୍ରକାଶିତ ହେଲା । ତାହାର ଇଂରାଜୀ ଅନୁବାଦ ମଧ୍ୟ ପ୍ରକାଶପାଇଲା । ଏହି ପୁସ୍ତକର ନାମ “ଲେକଚରସ ଅନ୍ କଣ୍ଡିସନ୍ଡ୍ ରିଫ୍ଲେକ୍ସସ୍” ।

୧୯୨୮ରେ ପାଭଲୋଭ ନିମନ୍ତ୍ରିତ ହୋଇଗଲେ ଇଂଲଣ୍ଡ । ଲଣ୍ଡନର ରୟାଲ ସୋସାଇଟିରେ “କ୍ରୁନିଆନ ବକ୍ତୃତା ମାଳା” କ୍ରମରେ ସେ କେତୋଟି ବକ୍ତୃତା ଦେଲେ । ସେତେବେଳକୁ ପାଭଲୋଭ ଇଂଲଣ୍ଡରେ ସୁପରିଚିତ ହୋଇସାରିଥିଲେ । ଜଣେ ଆନ୍ତର୍ଜାତିକ ଖ୍ୟାତିସମ୍ପନ୍ନ ଲବ୍ଧପ୍ରତିଷ୍ଠ ବୈଜ୍ଞାନିକ ଭାବରେ ବିଲାତରେ ବିଭିନ୍ନ ସ୍ଥାନରେ ତାଙ୍କୁ ବିପୁଳ ସମ୍ବର୍ଦ୍ଧନା ଜ୍ଞାପନ କରାଗଲା । କେତେକ ବିଶ୍ୱବିଦ୍ୟାଳୟ ପକ୍ଷରୁ ତାଙ୍କୁ ବିଭିନ୍ନ ଉପାଧିରେ ସମ୍ମାନିତ କରାଗଲା ।

ସେ ଏଭଳି ଏକ ଦେଶରୁ ଆସିଥିଲେ; ଯେଉଁଠି ମନୁଷ୍ୟର ସରଳତାହିଁ ଅମୂଲ୍ୟ ରତ୍ନ ବୋଲି ବିଚାର କରାଯାଉଥିଲା । ଜାତି ଭେଦ ନଥିଲା । ଧନୀ, ଦରିଦ୍ର ଭାବ ନଥିଲା । ବଂଶପରମ୍ପରା ପ୍ରଶ୍ନ ନଥିଲା, ସବୁଠାରୁ ବଡ଼ ପ୍ରଶ୍ନ ଥିଲା ମନୁଷ୍ୟର ଚରିତ୍ର ଓ ତାର କର୍ମକୁଶଳତା । ଋଷ ସେତେବେଳେ ଥିଲା ମନୁଷ୍ୟ ସମାଜ ପକ୍ଷରେ ଏକ ଆଦର୍ଶ ଦେଶ । ବହୁ ବର୍ଷର ଜାର ଶାସନର ଅତ୍ୟାଚାର

ଓ ଶୋଷଣରୁ ଲେଲିନ୍ ଜନସାଧାରଣଙ୍କୁ ମୁକ୍ତକରି ନୂତନ ଆଲୋକ, ନୂତନ ଉତ୍ସାହ ପ୍ରଦାନ କରିଥିଲେ । ପାଭଲୋଭ ହେଉଛନ୍ତି ସେ ଦେଶର ସେତେବେଳର ଶ୍ରେଷ୍ଠ ବୈଜ୍ଞାନିକ । ତେଣୁ ତାଙ୍କୁ ଦେଖିବା ପାଇଁ, ତାଙ୍କ କଥା ଶୁଣିବା ପାଇଁ ବ୍ରିଟେନର ଜନସାଧାରଣଙ୍କ ମନରେ ପ୍ରବଳ ଆଗ୍ରହ ଓ ଆକାଂକ୍ଷାଥିଲା ।

ବିଳାତ ଦେଶକୁ ଯାଇଥିଲେ ମଧ୍ୟ ସେ ଋଷର ଜାତୀୟ ପୋଷାକ ପିନ୍ଧୁଥିଲେ । ବ୍ରିଟେନ ଲୋକଙ୍କ ଫେସନ, ସେମାନଙ୍କ ପୋଷାକପତ୍ର ପ୍ରତି ତାଙ୍କର ଆଦୌ ଲୋଭ କିମ୍ୱା ଆକର୍ଷଣ ନ ଥିଲା । ସେ କହୁଥିଲେ, ମୋ ଦେଶର ପୋଷାକ ପିନ୍ଧିବାରେ ମୋ ମନରେ ସ୍ୱଭାବତ ଗର୍ବ ଆସେ । ମୁଁ ମୋର ଜାତୀୟ ପୋଷାକକୁ ସବୁବେଳେ ସମ୍ମାନ ଦିଏ ।

ପାଭଲୋଭ ଥିଲେ ଭାରି ବନ୍ଧୁପ୍ରିୟ । ସେ ସହଜରେ ଲୋକଙ୍କୁ ଆପଣାର କରି ନେଉଥିଲେ । ବିଳାତରେ ମଧ୍ୟ ସେ ଅଳ୍ପ କେତେଦିନ ମଧ୍ୟରେ ବହୁ ଲୋକଙ୍କ ସହିତ ବନ୍ଧୁତା କରିଦେଇ ପାରିଥିଲେ । ଦର୍ଶକମାନଙ୍କୁ ସେ ଏପରି ଭାବରେ ଆପଣାର କରି ନେଉଥିଲେ ଯେ, ପାଇଡ଼ପାଇପର ପଛରେ ଗୋଡ଼େଇବା ଭଳି ଲୋକେ ସେ ଯେଉଁଠି ଭାଷଣ ଦେଉଥିଲେ ସେଠିକି ଯାଉଥିଲେ ।

ଥରେ ସେ କାମ୍ବ୍ରିଜରେ ଭାଷଣ ଦେବାବେଳେ ଭୁଲିଗଲେ ଯେ ଜଣେ ତାଙ୍କ ଋଷ ଭାଷାକୁ ଇଂରେଜୀରେ ଅନୁବାଦ କରି ଲୋକଙ୍କୁ ବୁଝାଉଛି । ପ୍ରଥମେ ପ୍ରଥମେ ସେ ଗୋଟିଏ ଦୁଇଟି ବାକ୍ୟ କହିସାରି ଅନୁବାଦକ ଅନୁବାଦ କରିବା ପର୍ଯ୍ୟନ୍ତ ଅପେକ୍ଷା କରୁଥିଲେ । କିନ୍ତୁ

ମଝିରେ ସେ ଅନୁବାଦକଙ୍କୁ ଏକାବେଳେ ଭୁଲିଗଲେ । ଋଷ ଭାଷାରେ ଅନର୍ଗଳ କହିବାରେ ଲାଗିଲେ । ଅନୁବାଦ ପାଇଁ ଆଦୌ ଅପେକ୍ଷା କଲେ ନାହିଁ । ପରେ ଯେତେବେଳେ ଜାଣିପାରିଲେ, ହଠାତ୍ ରେଗିଯାଇ ବଡପାଟିରେ ହସିବାକୁ ଲାଗିଲେ । ସେ ଏଭଳି ହସ ହସିଲେ ଯେ ଶ୍ରୋତାମାନେ ନ ହସି ରହିପାରିଲେ ନାହିଁ । କିନ୍ତୁ ତାଙ୍କର ଏହି ହସ ହିଁ ଲୋକଙ୍କୁ ଅଭିଭୂତ କରି ପକାଇଲା । ଶ୍ରୋତାମାନେ ଭାବିଲେ ପାଭ୍ଲୋଭ ଯେପରି କି ନିଜ ପରିବାରର ଜଣେ ।

ପାଭ୍ଲୋଭ ତରୁଣ ବୟସରେ ବିବାହ କରିଥିଲେ । ତାଙ୍କ ସ୍ତ୍ରୀ ଥିଲେ ଜଣେ ଶିକ୍ଷୟିତ୍ରୀ । ସ୍ତ୍ରୀ ମଧ୍ୟ ତାଙ୍କ ଭଳି ଜଣେ ଧର୍ମ-ଯାଜକଙ୍କ ଝିଅ । ତାଙ୍କର ଚାରୋଟି ସନ୍ତାନ ମଧ୍ୟରୁ ଗୋଟିଏ ପୁଅ ବାପ ଭଳି ବିଖ୍ୟାତ ହୋଇପାରିଥିଲେ । ଏହି ପୁଅ ଜଣକ ଇଂଲଣ୍ଡରେ କାମ୍ବ୍ରିଜରେ ପ୍ରଫେସର ଜେ. ଜେ. ଥମ୍ସନ୍ଙ୍କ ଅଧୀନରେ ଶିକ୍ଷାଲାଭ କରି ପରେ ଋଷର ଲେନିନଗ୍ରାଡଠାରେ ଫିଜିକ୍ସରେ ପ୍ରଫେସର ହୋଇଥିଲେ ।

ବ୍ୟକ୍ତିଗତ ଜୀବନରେ ପାଭ୍ଲୋଭ ଥିଲେ ଅତ୍ୟନ୍ତ ସରଳ ଓ କଠୋର ପରିଶ୍ରମୀ । ଦେଶରେ ଖାଦ୍ୟାଭାବ ବେଳେ ତାଙ୍କର ବହୁ ପୋଷା କୁକୁର ମରିଯାଇଥିଲେ, ମାତ୍ର ଯେଉଁ କେତୋଟି ବଞ୍ଚିଥିଲେ, ସେମାନଙ୍କୁ ବଞ୍ଚେଇ ରଖିବାପାଇଁ ନିଜ ଖାଦ୍ୟରୁ ସେମାନଙ୍କୁ ଖାଇବାକୁ ଦେଉଥିଲେ । ଇଲେକ୍ଟ୍ରିକ୍ ଲାଇଟ୍ ଲିଭିଗଲେ, ଘରେ ମହମବତୀ ନଥିଲେ ମଧ୍ୟ ସେ କାଠ ଦୀପରେ ତେଲଡିବି ପଢୁଥିଲେ, ଲେଖୁଥିଲେ । ଟ୍ରାମ ଚଳାଚଳ ଯେଉଁଦିନ ବନ୍ଦ ହୋଇଯାଉଥିଲା, ସେଦିନ ସେ ସାଇକେଲରେ ଯିବା ଆସିବା

କରୁଥିଲେ । ଜଂଘ ଜଖମ ହୋଇଥିଲେ ମଧ୍ୟ ଲବୋରେଟରୀକୁ ଯିବା ବନ୍ଦ କରୁ ନଥିଲେ ।

ଥରେ ସେ ଲବୋରେଟରୀରେ ଖିଆପିଆ ବେଳେ ଅନ୍ୟ ବନ୍ଧୁମାନଙ୍କୁ କହିଲେ, 'ମାନସିକ ପରିଶ୍ରମ କରି ମୁଁ ଯେଉଁ ଆନନ୍ଦ ପାଏ, ତାଠୁ ଅଧିକ ଆନନ୍ଦ ପାଏ ଶାରୀରିକ ପରିଶ୍ରମ କରି । ମୋ ଜେଜେ ବାପା ନିଜ ହାତରେ ଲଙ୍ଗଳ ଧରି ଜମି ଚାଷ କରୁଥିଲେ । ମୁଁ ମଧ୍ୟ ସେଥିପାଇଁ ପ୍ରସ୍ତୁତ । ବୈଜ୍ଞାନିକ ଗବେଷଣା କରିବା ଅର୍ଥ ନୁହେଁ ଯେ ତୁମେ କେବଳ ମାନସିକ ପରିଶ୍ରମ କରିବ । ମାନସିକ ପରିଶ୍ରମ ପାଇଁ ଶାରୀରିକ ପରିଶ୍ରମ ମଧ୍ୟ ଆବଶ୍ୟକ । ଶାରୀରିକ ପରିଶ୍ରମ ମନକୁ ସୁସ୍ଥ ରଖେ । ମନ ସୁସ୍ଥ ରହିଲେ ଯାଇ କୌଣସି ଗବେଷଣା କରାଯାଇପାରେ । ତେଣୁ ସମସ୍ତେ ଶାରୀରିକ ପରିଶ୍ରମ କରିବା ନିତାନ୍ତ ଆବଶ୍ୟକ ।"

ଏ କଥା କହିବାବେଳେ ସେ ବନ୍ଧୁମାନଙ୍କୁ ଦେଖାଇ କହିଲେ; "ଦେଖୁଛ ତ ମୋ ସାଇକେଲରେ ଗୋଟିଏ ଟୋକେଇ ଓହଳିଛି । ଏଥିରେ ଅଛି ପନିପରିବା । ମୁଁ ପ୍ରତ୍ୟେକ ଦିନ ବଜାରକୁ ପନିପରିବା କିଣିବାକୁ ଯାଏ ।"

ରେଲୱେ ଟାଇମ୍ ଟେବୁଲ୍ ଭଳି ପାଭ୍‌ଲୋଭଙ୍କ ଦୈନନ୍ଦିନ କାର୍ଯ୍ୟ ଚାଲିଥାଏ । ସକାଳ ଠିକ୍ ଆଠଟାବେଳେ ଜଳଖିଆ । ଠିକ୍ ସାଢ଼େ ନଅଟା ବାଜିବା ମାତ୍ରେ ସେ ତାଙ୍କର ବିଭିନ୍ନ ଗବେଷଣାଗାର ମଧ୍ୟରୁ ଯେ କୌଣସି ଗୋଟିଏ ସ୍ଥାନକୁ ଯାଉଥିଲେ । ସାଢ଼େ ୧୨ଟା ବେଳେ ମଧ୍ୟାହ୍ନ ଭୋଜନ । ସନ୍ଧ୍ୟା ୭ଟା ବେଳେ ରାତ୍ରି ଭୋଜନ । ତା'ପରେ ୯ଟା ପର୍ଯ୍ୟନ୍ତ ବିଶ୍ରାମ ନେବାପାଇଁ ଦେହ ମୁହଁ ପୋଛିପୋଛି କରି ରାତି ୧୦ଟାରୁ ସାଢ଼େ ଗୋଟାଏ ପର୍ଯ୍ୟନ୍ତ

ପଡ଼ାପଡ଼ିରେ ଲାଗିଯାଉଥିଲେ । ଠିକ୍ ତାସ୍ ଖେଳରେ ତାସ୍ ଲେଉଟାଇବା ଭଳି ତାଙ୍କର ଖିଆପିଆ, ଶୁଆ ଆଦି କାମ ଚାଲୁଥିଲା । ଜୀବନର ଶେଷ ପର୍ଯ୍ୟନ୍ତ ଏହି କାର୍ଯ୍ୟନିର୍ଘଣ୍ଟର କୌଣସି ପରିବର୍ତ୍ତନ ହୋଇ ନଥିଲା । କୌଣସି କାର୍ଯ୍ୟରେ ସେ ବିଳମ୍ବ କରୁ ନଥିଲେ । ଠିକ୍ ଘଣ୍ଟା କଣ୍ଟାକୁ ଦେଖି ସେ ତାଙ୍କ ଲେକ୍‌ଚର ରୁମ୍‌ରେ ପ୍ରବେଶ କରୁଥିଲେ । ମିନଟ କଥା ଛାଡ଼, ସେକେଣ୍ଡ ସୁଦ୍ଧା ଏପଟ ସେପଟ ହେଉ ନଥିଲା । ତାଙ୍କ ଲେକ୍‌ଚର ମଧ୍ୟ ଠିକ ସମସ୍ତ ଅନୁସାପ୍ତୀ ଶେଷ ହେଉଥିଲା । ଲେକଚର୍‌ର ଶେଷ ବାକ୍ୟ ହେଲାବେଳକୁ ପିରିଅଡ଼ ଶେଷ ଘଣ୍ଟା ବାଜୁଥିଲା ।

ଜୀବନର ଶେଷ ଦଶବର୍ଷ ବେଳକୁ ପାଭଲୋଭଙ୍କ ଅଧୀନରେ ରହିଥିଲା ତିନୋଟି ବଡ଼ ଧରଣର ଗବେଷଣା ବିଭାଗ (୧) ଇନଷ୍ଟି-ଚିଉଟ୍ ଅଫ୍ ଏକ୍‌ସପେରିମେଣ୍ଟାଲ ମେଡ଼ିସିନ, (୨) ଫିଜିଓଲଜିକାଲ ଇନଷ୍ଟିଚିଉଟ ଅଫ ଦି ଏକାଡ଼େମୀ ଅଫ୍ ସାଏନ୍‌ସେସ, (୩) କୋଲଟୁସୀ ବାଇଓଲଜିକଲ ଷ୍ଟେସନ । ପରେ ତାଙ୍କ ନିଜ ପାଇଁ ସରକାର ଏକ ଘର ତୋଳି ଦେଇଥିଲେ ।

ଜୀବନର ଶେଷ ଆଡ଼କୁ ତାଙ୍କ ଗବେଷଣାରେ ଏକ ନୂତନ ମୋଡ଼ ଦେଖାଗଲା । ସେ କୁକୁରମାନଙ୍କ ଉପରେ ଗବେଷଣା ଚଳାଇବାବେଳେ ଜାଣିପାରିଥିଲେ ଯେ, ମନୁଷ୍ୟ ଦେହରେ ଯେପରି ସ୍ନାୟବିକ ଦୁର୍ବଳତା ଓ ନିସ୍ପୃହତା ଦେଖାଯାଏ, ମଣିଷର ଅଙ୍ଗପ୍ରତ୍ୟଙ୍ଗ ଅଚଳ ହୋଇପଡ଼େ, ସେହିଭଳି କୁକୁରମାନଙ୍କ ଶରୀରରେ ମଧ୍ୟ ଦେଖାଯାଏ । ପାଭଲୋଭ ଓ ତାଙ୍କର ସହଯୋଗୀ ବୈଜ୍ଞାନିକମାନେ ଏହି ଅବସ୍ଥା ସମ୍ପର୍କରେ ସବିଶେଷ ଗବେଷଣା ଚଳାଇଲେ । ସେମାନେ ଜାଣିପାରିଲେ ଯେ, ଏ ଯେଉଁ ବିଭ୍ରାଟ ଓ

ଗୋଳମାଳ ଦେଖାଯାଉଛି, ତାହା ମନଯୋଗୁଁ ନୁହଁ, ଶରୀର ଯୋଗୁଁ । ଗବେଷଣାରେ ଅବଶ୍ୟ ସେମାନେ କୃତକାର୍ଯ୍ୟ ହେଲେ; ତେବେ ପୂରାପୂରି ନୁହଁ । କିନ୍ତୁ ସେମାନେ ବିଜ୍ଞାନ ଭଣ୍ଡାର ଖୋଲିବାପାଇଁ ଏକ ଚାବିକାଠି ଦେଇଗଲେ । ସେମାନେ କହିଲେ ଯେ ଆଧୁନିକ ସଭ୍ୟତାର ଯେଉଁ ବୋଝ ଓ ଚାପ ଆସି ମଣିଷ ଦେହରେ ପଡ଼ୁଛି, ତା ଫଳରେ କେତେକ ସ୍ନାୟବିକ ଦୁର୍ବଳତା ଦେଖାଦେଉଛି । ଶରୀର ଓ ମନ ମଧ୍ୟରେ ସମ୍ପର୍କ କି ଧରଣର, ତାହା ଏ ପର୍ଯ୍ୟନ୍ତ ସ୍ପଷ୍ଟ ହୋଇପାରିନାହିଁ । ତେବେ ପାଭ୍‌ଲୋଭ ଯେଉଁ ପନ୍ଥା ଦେଖାଇ ଦେଇଯାଇଛନ୍ତି, ତଦ୍ୱାରା ବୈଜ୍ଞାନିକମାନେ ହେନେ ନା ହେନେ ଏହି ରହସ୍ୟ ଉଦ୍‌ଘାଟନ କରିପାରିବେ ବୋଲି ଆଶା କରାଯାଉଛି ।

ଏହି ଗବେଷଣା ଚାଲିଥିବା ସମୟରେ ପାଭ୍‌ଲୋଭ୍‌ଙ୍କ ମୁଖ୍ୟ କାମ ଥିଲା ଲୁକଲୋଭଠାରେ ଫିଜିଓଲଜିକାଲ ଇନ୍‌ଷ୍ଟିଚିଉଟର କର୍ମଚାରୀମାନଙ୍କୁ ଏକାଠି କରାଇ ଏ ସମ୍ପର୍କରେ ବୁଝାଇବା । ପ୍ରତି ସପ୍ତାହରେ ଥରେ ଏହି ବୈଠକ ବସୁଥିଲା ।

ଏହି ବୈଠକକୁ ଲୋକେ କହୁଥିଲେ, 'ପାଭ୍‌ଲୋଭଙ୍କ ବୁଧବାର ।' କାରଣ ପ୍ରତି ବୁଧବାର ଦିନ ଏହି ବୈଠକ ବସୁଥିଲା । ଯଦି କୌଣସି କର୍ମଚାରୀ ଗବେଷଣାରୁ କୌଣସି ନୂତନ ତଥ୍ୟ ପାଉଥିଲା, ସେ ଆସି ଏହି ବୈଠକରେ କହୁଥିଲା ଏବଂ ତା ଉପରେ ଆଲୋଚନା କରାଯାଉଥିଲା । ଏଠାରେ ସମସ୍ତେ ସମାନ ଥିଲେ । ବଡ଼ ସାନର ବିଚାର ନଥିଲା । ଯାହା ମନକୁ ଯାହା ଆସୁଥିଲା କହିପାରୁଥିଲା । ଅନ୍ୟକୁ ସମାଲୋଚନା ମଧ୍ୟ କରିପାରୁଥିଲା । ପାଭଲୋଭ କହୁଥିଲେ, ମୁଁ କହିବା ପରେ ଯଦି ମୋ କଥା କାହା

ମଣକୁ ପାଉ ନଥାଏ, ମନରେ ଯଦି କୌଣସି ସନ୍ଦେହ ରହିଥାଏ, ମନଖୋଲି କୁହ । ମତେ ମଧ୍ୟ ସମାଲୋଚନା କର । ସମାଲୋଚନା ଭିତରେ ଜ୍ଞାନର ବିକାଶ ହୋଇପାରିବ । ଏହା ଫଳରେ ଅନ୍ୟ କର୍ମଚାରୀମାନେ ବିଭିନ୍ନ ସମସ୍ୟା ଜାଣିପାରୁଥିଲେ । ପରସ୍ପର ମଧ୍ୟରେ ତର୍କ ହେବାରେ ଗବେଷଣା ବେଳେ ଯଦି କାହାର କିଛି ସନ୍ଦେହ ରହିଯାଇଥାଏ ତାହା ସ୍ପଷ୍ଟ ହୋଇଯାଉଥିଲା । କୌଣସି ତଥ୍ୟକୁ ଭଲ ଭାବରେ ପରୀକ୍ଷା ନିରୀକ୍ଷା କରି ନଯିବା ପର୍ଯ୍ୟନ୍ତ ପୁସ୍ତକ ଆକାରରେ ପ୍ରକାଶ କରାଯାଉନଥିଲା । କାରଣ ଏ ଦିଗରେ ପାଭ୍‌ଲୋଭ ଥିଲେ ଜ୍ୱଳନ୍ତ ଉଦାହରଣ । ସେ ତାଙ୍କର କୌଣସି କୌଣସି ତଥ୍ୟକୁ ସହଜେ ପ୍ରକାଶ କରିବାପାଇଁ ଛାଡ଼ୁନଥିଲେ । ଗୋଟିଏ ତଥ୍ୟ ଆବିଷ୍କାର କରିବା ପରେ ତାହା ଲୋକଙ୍କୁ ଜଣାଇବା ଆଗରୁ ତା ଉପରେ ବାରମ୍ବାର ପରୀକ୍ଷା ଚଳାଉଥିଲେ । ଠିକ୍ ଅଛି ବୋଲି ସମ୍ପୂର୍ଣ୍ଣ ହୃଦବୋଧ ହେଲେ ଯାଇ ବହି ଆକାରରେ ପ୍ରକାଶ ଲାଗି ଅନୁମତି ଦେଉଥିଲେ । ଏହା ଥିଲା ତାଙ୍କର ସବୁଠାରୁ ବଡ଼ ସୁଗୁଣ । ତେଣୁ ତାଙ୍କର ଆବିଷ୍କାରଗୁଡ଼ିକ ନିର୍ଭୁଲ ହେଉଥିଲା ।

ତାଙ୍କ ସ୍ୱାସ୍ଥ୍ୟ ସବୁବେଳେ ଭଲ ରହୁ ନଥିଲା । ଦେହରେ ଥରେ ରୋଗ ଦେଖାଯିବା ମାତ୍ରେ ଏ କିପରି ହେଲା, କେଉଁଠୁ ଆସିଲା ତାକୁ ଟିକିନିଖି ଭାବରେ ପର୍ଯ୍ୟବେକ୍ଷଣ କରିବାରେ ରୋଗ ଆପେ ଆପେ ଡରି ଚାଲିଯାଉଥିଲା ।

୧୯୩୬ ଫେବୃଆରୀ ମାସରେ ୮୬ବର୍ଷ ବୟସରେ ସେ ଦେହତ୍ୟାଗ କଲେ । ଦେହରେ ୧୦୫ ଡିଗ୍ରୀ ଉତ୍ତାପ ଥିଲାବେଳେ ମଧ୍ୟ ସେ ଲେଖା ଲେଖି ବନ୍ଦ କରୁନଥିଲେ । ଏପରି କି ମରିବାର

ଅଧ ଘଣ୍ଟାକ ଆଗରୁ ମଧ୍ୟ ସେ ତାଙ୍କ ଗବେଷଣା ସମ୍ପର୍କରେ ଲେଖାଲେଖି କରୁଥିବା ଦେଖାଯାଉଥିଲା । ହଠାତ୍ ସେ ଗୁରୁତର ଭାବରେ ପୀଡ଼ିତ ହୋଇପଡ଼ିବା ପରେ ଫେବୃଆରୀ ୨୭ ତାରିଖ ସକାଳେ ସମସ୍ତଙ୍କୁ କହିଲେ, "ମୋର ଯିବାର ସମୟ ହୋଇଗଲା, ଭଲ ପୋଷାକ ଦିଅ, ପିନ୍ଧି ନେବି" କହୁ କହୁ ସେ ଶେଷ ନିଶ୍ୱାସ ତ୍ୟାଗ କଲେ ।

ପାଭଲୋଭ ତାଙ୍କର "ରିଫ୍ଲେକ୍ସ ଆକସନ୍" ତତ୍ତ୍ୱଲାଗି ପୃଥିବୀ ବିଖ୍ୟାତ । ହଠାତ୍ ଗୋଟାଏ ଶବ୍ଦ ହେଲା, ମଣିଷ ଚମକି ଉଠେ । ଟ୍ରକଟିଏ ଯାଉଛି ଶବ୍ଦ ହେଲା ତ ବାଟରେ ଯିବା ମନୁଷ୍ୟ ଡେଇଁ ପଡେ । ଏଥିରେ ବିପଦ ଅଛି କି ନାହିଁ ବିଚାର କରିବାକୁ ବେଳ ନଥାଏ, କିନ୍ତୁ ସେ ଡ଼ିଏଁ । ଆଖିରେ ଧୂଳିକଣା ବାଜିବା ମାତ୍ରେ ଆଖିପତା ପଡ଼ି ଆସେ । ବାହାରର କୌଣସି ଜିନିଷ ନାକରେ ପଶିବା ମାତ୍ର ଛିଙ୍କ ଆସେ । ଶ୍ୱାସନଳୀ ଭିତରେ କୌଣସି ଜିନିଷ ପଶିଯିବା ମାତ୍ରେ କାଶ ଆସେ । ଜିନିଷଟି ନ ବାହାରିବା ପର୍ଯ୍ୟନ୍ତ କାଶ ହୁଏ । ଏ ସବୁ କାର୍ଯ୍ୟଗୁଡ଼ିକ ହେଉଛି "ରିଫ୍ଲେକ୍ସ ଆକସନ ।" ଏଥିଲାଗି ଚିନ୍ତା କରିବାକୁ ପଡ଼େନା । କିନ୍ତୁ ଏ ସମ୍ପର୍କରେ ପାଭଲୋଭଙ୍କୁ ବହୁତ ଚିନ୍ତା କରିବାକୁ ପଡ଼ିଥିଲା ।

ପାଭଲୋଭ ପାଟିରୁ ଲାଳ ଗଡ଼ିବା ସମ୍ପର୍କରେ ବିଶେଷ ଭାବରେ ଗବେଷଣା କରିଥିଲେ । ସେଥିପାଇଁ ସେ କୁକୁରକୁ ମାଧ୍ୟମ ଭାବରେ ଗ୍ରହଣ କରିଥିଲେ । ସେ ପ୍ରମାଣ କରିଦେଲେ ଯେ, କେବଳ ଖାଦ୍ୟକୁ ଦେଖିଲେ ଯେ ପାଟିରୁ ଲାଳ ଗଡ଼ିବ ତା ନୁହେଁ, ଘଣ୍ଟି ବାଜିବା ମାତ୍ରେ ମଧ୍ୟ କୁକୁର

ପାଚିରୁ ଲାଳ ଗଡ଼ିବ । ସେ ଗୋଟିଏ କୁକୁରକୁ ନେଇ ଏକ ଘର ଭିତରେ ରଖିଲେ । ତାକୁ ଯେତେବେଳେ ଖାଇବାକୁ ଦେଉ-ଥିଲେ ସେତେବେଳେ ଘଣ୍ଟିଟିଏ ବଜାଉଥିଲେ । କ୍ରମଶଃ ଦେଖାଗଲା ଖାଦ୍ୟକୁ ନ ଦେଖିଲେ ମଧ୍ୟ ଘଣ୍ଟି ବାଜିବା ମାତ୍ରେ କୁକୁର ପାଟିରୁ ଲାଳ ଗଡ଼ିଲା । ସେ ଦେଖାଇ ଦେଲେ ଯେ କେତେକ ଅସାଧାରଣ ଅବସ୍ଥାରେ ମଧ୍ୟ ହଜମି ଲାଳ ପଡ଼ିପାରେ ।

ମୃତ୍ୟୁର ଅଳ୍ପ କେତେଦିନ ପୂର୍ବରୁ ସେ 'ବିକ୍ୱେଷ୍ଟ ଟୁ ଦି ଏକାଡେମିକ ୟୁଥ୍ ଅଫ ଋଷିଆ' ଶୀର୍ଷକ ଖଣ୍ଡିଏ ଉପାଦେୟ ପୁସ୍ତକ ଲେଖିଥିଲେ । ଏଥିରେ ସେ ଋଷର ଯୁବକମାନଙ୍କୁ ଆହ୍ୱାନ କରିଥିଲେ—ଏକମନ, ଏକ ପ୍ରାଣ ହୋଇ କାମ କର, ବିଜ୍ଞାନକୁ ଭଲପାଅ । ଭାବ ନାହିଁ ଯେ ତୁମେ ସବୁକିଛି ଜାଣିଛ । ଅନ୍ୟ-ମାନେ ତୁମର ପ୍ରଶଂସା କଲେ ମଧ୍ୟ ସାହସର ସହିତ ନିଜକୁ ନିଜେ କୁହ ପ୍ରକୃତରେ ମୁଁ କିଛି ଜାଣିନି" ?

ଏତେ ବଡ଼ ବୈଜ୍ଞାନିକ । ନୋବେଲ ପ୍ରାଇଜ ପାଇଥିଲେ । ଡକ୍ଟରେଟ ଉପାଧି କେତେ ଯେ ପାଇଥିଲେ ତାର ହିସାବ ନାହିଁ । ତଥାପି ତାଙ୍କ ମନରେ ଟିକେ ହେଲେ ଗର୍ବ ନଥିଲା । ସେ ଥିଲେ ଅତି ନମ୍ର ଓ ସରଳ ।

--:--